କକାଙ୍କ କାହାଣୀ-୧

# ବିଷ୍ଣୁପୁରର ଭିତିରି କଥା



ଡକ୍ଟର ହରେକୃଷ୍ଣ ମହତାବ

କକାଙ୍କ କାହାଣୀ ॥ ୧

# ବିଷ୍ଣୁପୁରର ଭିତିରି କଥା

ଲେଖକ :

ଡକ୍ଟର ହରେକୃଷ୍ଣ ମହତାବ



ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ୍

କଟକ-୭୫୩୦୦୨

କକାଙ୍କ କାହାଣୀ ॥ ୧

# ବସ୍ତୁପୁରର ଭିତର କଥା




ଲେଖକ :

ଡକ୍ଟର ହରେକୃଷ୍ଣ ମହତାବ





ପ୍ରକାଶକ

ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ୍

କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

୧୯୮୯

ମୁଦ୍ରଣ :

ପ୍ରଜାତନ୍ତ୍ର ପ୍ରେସ୍,

କଟକ-୭୫୩୦୦୨

ପ୍ରଚ୍ଛଦ : ଶିଳ୍ପୀ ଅଶୋକ

ମୂଲ୍ୟ : ଗୃଉଟଙ୍କା ପଚୃଶ ପଇସା

# ଭିତରେ ଅଛି

# ଘୋଷା ରାମପ୍ରସାଦ



ବିଶ୍ୱମ୍ଭର ଓ ରାମପ୍ରସାଦ ବୋଲି ଦୁଇଜଣ ପିଲା ଏକା ସାଙ୍ଗରେ ଇସ୍କୁଲରେ ପଢ଼ୁଥିଲେ । ଏକା ଗାଆଁର ଦୁଇ ପିଲା, ଏଣୁ ପରସ୍ପର ସେମାନେ ଭାରି ସାଙ୍ଗ ଥିଲେ । ଏକା କ୍ଲାସରେ ମଧ୍ୟ ପଢ଼ୁଥିଲେ । ବିଶ୍ୱମ୍ଭର ଭାରି ପରିଶ୍ରମ କରି ପାଠ ପଢ଼େ, ଇସ୍କୁଲରେ ମାଷ୍ଟ୍ର ଯାହା ପଢ଼ାନ୍ତି, ତାକୁ ମନଦେଇ ଶୁଣେ ।

କିନ୍ତୁ ରାମପ୍ରସାଦ ଟିକିଏ ଚଗଲା ପିଲା ଥିଲା । ତାର ବୁଦ୍ଧି ଭଲ, କିନ୍ତୁ ମନଦେଇ ପଢ଼େନାହିଁ କି ମାଷ୍ଟ୍ରଙ୍କ ପଢ଼ା ଶୁଣେ ନାହିଁ । ଫଳରେ କ୍ଲାସରେ ବିଶ୍ୱମ୍ଭର ପ୍ରଥମ କି ଦ୍ୱିତୀୟ ହୁଏ, ମାତ୍ର ରାମପ୍ରସାଦ ଯଥାକଥାକି ପାସ୍ କରିଥାଏ, ଖାଲି ବୁଦ୍ଧି-ଜୋର୍‌ରେ । ରାମପ୍ରସାଦ ବିଶ୍ୱମ୍ଭରକୁ 'ଘୋଷାବଳଦ' ବୋଲି ଥଟ୍ଟା କରେ । ବିଶ୍ୱମ୍ଭର ବିଚାରା ଖାଲି ଟିକିଏ ମୁରୁକି-ହସା ଦେଇ ଚୁପ୍ ହୋଇଥାଏ । ଘରେ ଯେତେବେଳେ ବାପା ମାଆ ପଚାରନ୍ତି ପାଠପଢ଼ା କଥା, ରାମପ୍ରସାଦ ଓ ବିଶ୍ୱମ୍ଭର ଦୁହେଁ ତ ପରୀକ୍ଷାରେ ପାସ୍ କରୁଛନ୍ତି, ଏଣୁ ଦୁହେଁ ଭଲ ପଢ଼ୁଛନ୍ତି ବୋଲି ସମସ୍ତେ ଜାଣନ୍ତି ।

ଏହିପରି ଚାଲିଥାଏ । ଆସି ପହଞ୍ଚିଲା ମେଟ୍ରିକୁଲେସନ୍ ପରୀକ୍ଷା । ରାଷ୍ଟ୍ର ହେଲା ଯେ ଏଥର ପ୍ରଶ୍ନ ଭାରି କଠିନ ପଡ଼ିବ, ଫାଙ୍କିଦେଇ ପାସ୍ କରିବା ସହଜ ହେବ ନାହିଁ ।

ଏ ଗୁଜବ ଶୁଣି ରାମପ୍ରସାଦ ଭୟ ପାଇଗଲା, ଯଦି ଦୈବାତ୍ ପରୀକ୍ଷାରେ ଫେଲ୍ ହୋଇଯାଏ, ତେବେ ବିଶ୍ୱମ୍ଭର ପଛକୁ ସେ ପଡ଼ିଯିବ; ବୁଦ୍ଧିମାନ ବୋଲି ଯେ ତା'ର ଗର୍ବ ଅଛି, ତା' ଭାଙ୍ଗିଯିବ । ପରୀକ୍ଷା ଦି'ମାସ ଅଛି, ରାମପ୍ରସାଦ ରାତିଦିନ ପଢ଼ିବାରେ ଲାଗିଲା । ଯେତିକି ପଢ଼ିବାରେ ସେ ମନ ଦେଉଥାଏ, ସେତିକି ତାକୁ ଅଡ଼ୁଆ ଲାଗୁଥାଏ । କାରଣ, ମନକୁ କୌଣସି କାମରେ ଲଗାଇବା ପାଇଁ ଅଭ୍ୟାସ ଦରକାର । ସେ ଅଭ୍ୟାସ ରାମପ୍ରସାଦର ନାହିଁ ।

ତଥାପି ରାତିଦିନ ବହିରେ ମୁଣ୍ଡ ମାଡ଼ିଦେଇ ସେ ବସିଲା । ଏଣେ କଟକ-ଚଣ୍ଡୀଙ୍କଠି ପ୍ରତିଦିନ ସନ୍ଧ୍ୟାବେଳେ ଆସି ମୁଣ୍ଡିଆ ମାରି କିଛି ମାନସିକ ରଖିଲା । ସକାଳ ଗାଧୁଆ ପରେ ରାମପ୍ରସାଦ ମୁଣ୍ଡରେ ଚଣ୍ଡୀଙ୍କ ସିନ୍ଦୂର ମଧ୍ୟ ସାଙ୍ଗମାନେ ଦେଖି ଥଟ୍ଟା ପରିହାସ କଲେ ।

ଏହି ସମୟରେ ଏକ ସାଧୁ ଆସି କଟକରେ ପହଞ୍ଚିଲେ । ସେ କହିଲେ ଯେ ତାଙ୍କଠାରୁ ଟିକିଏ ବିଭୂତି ନେଇ ମୁଣ୍ଡରେ ମାରି ଯେକୌଣସି କାମକୁ ଗଲେ ସେଠି ଜୟ ହେବ । ସହରର କେତେକ ବଡ଼ ବଡ଼ ଲୋକ ସାଧୁଙ୍କ କଥାରେ ଚାଲିବାର ଦେଖି ରାମପ୍ରସାଦ ଭାବିଲା ଯେ ସେ ଆଉ ଏତେ ପରିଶ୍ରମ କରି ପଢ଼ିବା ଦରକାର ନାହିଁ ।







ସାଧୁଙ୍କଠି ୨।୩ ଘଣ୍ଟା ବସି ତାଙ୍କର ବିଭୂତି ଆଣିଲେ କାମ ହୋଇଯିବ । ବିଶ୍ୱମ୍ଭର ଏ କଥାରେ ବିଶ୍ୱାସ କଲା ନାହିଁ । ସେ କହିଲା, ପରିଶ୍ରମ ନ କଲେ ସାଧୁ ତ' ସାଧୁ, ତାଙ୍କ ଗୁରୁ ବି କିଛି କରିଦେଇ ପାରିବେ ନାହିଁ । ତାକୁ ରାମପ୍ରସାଦ ଥଟ୍ଟାରେ ଉଡ଼ାଇ ଦେଲା ।

ଏହିପରି ହେଉଁ ହେଉଁ ପରୀକ୍ଷା ଆସି ପହଞ୍ଚିଲା । ବିଶ୍ୱମ୍ଭର ବିଶ୍ୱାସ ଉପରେ ପରୀକ୍ଷା ଦେଉଛି । ରାମପ୍ରସାଦ ଖୁବ୍ ଫୁର୍ତ୍ତିରେ ସାଧୁଙ୍କ ବିଭୂତି ମାରି ପ୍ରଶ୍ନ କାଗଜ ଓଲଟାଇଲା ବେଳକୁ ତା' ମୁଣ୍ଡ ଶୂନ୍ୟ । କିଛି ଆସୁନାହିଁ ।

ପରୀକ୍ଷା ଫଳ ବାହାରିବା ଆଗରୁ ବିଶ୍ୱମ୍ଭର ନିଜେ ହିସାବ କରି ବୁଝିଲା ଯେ ସେ ପ୍ରଥମ ଶ୍ରେଣୀରେ ପାସ୍ କରିବ । ରାମପ୍ରସାଦ ପୁଣି ସେହି ସାଧୁ କଥାରେ ବିଶ୍ୱାସ କଲା ଯେ ପରୀକ୍ଷା ଖାତାରେ କିଛି ନ ଲେଖିଲେ କ'ଣ ହେବ, ସାଧୁଙ୍କ ଆଜ୍ଞାରେ ଖାତାରେ ଆପେ ଆପେ ନମ୍ବର ବଢ଼ିଯିବ ।

ଫଳ ବାହାରିଲା । ବିଶ୍ୱମ୍ଭର କୋଡ଼ିଏ ଟଙ୍କା ବୃତ୍ତି ପାଇଛି, କିନ୍ତୁ ରାମପ୍ରସାଦର ନାଆଁ ନାହିଁ । ରାମପ୍ରସାଦ ରାଗିମାଗି ସାଧୁ ପାଖକୁ ଗଲାବେଳକୁ ସେ କହିଲେ, ତମ ପୂର୍ବଜନ୍ମର କର୍ମଦୋଷ ହେତୁ ଏ ଜନ୍ମରେ ବିଭୂତି କାମ କଲା ନାହିଁ ।

ସେଇଠୁ ରାମପ୍ରସାଦ ନିରାଶ ହୋଇ ଚଣ୍ଡୀଙ୍କ ମନ୍ଦିରରେ କାନ୍ଦୁଣୁମାନ୍ଦୁଣୁ ଓ ଲମ୍ବତମ୍ବ ହୋଇ ଗୋଡ଼ତଳେ ପଡ଼ିଗଲା । କିଛି ସମୟ ପରେ ସେ ଶୁଣିବାକୁ ପାଇଲା, କିଏ ଯେପରି ତାକୁ କହୁଛି "ତୁ ଏକ ନିର୍ବୋଧ । ନିଜେ ପରିଶ୍ରମ କର, ଯତ୍ନ କର, ତା ପରେ ସିନ୍ଦୂର ଟିପା ମାରିଲେ ସିନା କିଛି ହେବ । ଖାଲି ବିଭୂତିରେ ସାଧୁଙ୍କୁ ଶିଷ୍ୟ ମିଳିବେ ସିନା, କିନ୍ତୁ ଶିଷ୍ୟଙ୍କର କାମ ହେବନାହିଁ ।'

ଏକଥା ଗାଁଆଡ଼େ ରାଷ୍ଟ୍ର ହେଲା । ସେହିଦିନୁ ଚଣ୍ଡୀମନ୍ଦିରକୁ ଇସ୍କୁଲ ପିଲା କମ୍ ଆସୁଛନ୍ତି । ଆଉ ସାଧୁଙ୍କ ପାଖକୁ କେହି ଯାଉନାହାନ୍ତି ।

# ନାକକଟା ବାବାଜୀ



ଜଣେ ତା' ଗାଆଁରେ ତା'ର ଏକ ପଡ଼ିଶା ସାଙ୍ଗରେ ବିଲବାଡ଼ି ନେଇ କଳିତକରାର କରୁ କରୁ ମାରପିଟ୍ ହେଲା । ପଡ଼ିଶା ରାଗିଯାଇ ସେ ଲୋକଟିର ନାକଟିକୁ ଦାଆରେ କାଟିଦେଲା । ନାକ କଟିଗଲା ପରେ ତାକୁ ବଡ଼ ଲଜ୍ଜା ହେଲା । ଗାଆଁରେ କାହାକୁ ମୁହଁ ଦେଖେଇ ପାରିଲା ନାହିଁ । ସେ ଗାଆଁ ଛାଡ଼ିଦେଇ ଆଉ ଏକ ଦୂର ଗାଆଁରେ ମୁହଁରେ ଲୁଗା ଗୁଡ଼େଇ ଗାଆଁ ମୁଣ୍ଡ ଆମ୍ବତୋଟାରେ ଠେକା ମାଡ଼ି ବସିରହିଲା ।

ସେ ଗାଆଁର ଲୋକ ଭାବିଲେ, ଏ ଏକ ବାବାଜୀ, କେଉଁଠୁ ଆସି କିଛି ସାଧନା କରୁଛି । ଦିନେ ଦି ଦିନ ଉପାସ ଭୋକରେ ସେଇଠି ବସିରହିଲା ପରେ ଗାଆଁର ଲୋକ ଫଳ, ଦୁଧ ଆଣି ତା ପାଖରେ ଥୋଇଲେ । ସେତେବେଳକୁ ବାବାଜୀଙ୍କ ନାମଡାକ ହେଲାଣି । ବାବାଜୀ କାହାରିକୁ କଥା କହନ୍ତି ନାହିଁ କି ମୁହଁରୁ ଲୁଗା ଖୋଲନ୍ତି ନାହିଁ । ଫଳ ମୂଳ, ଦୁଧ, ଯାହା ଦିଆଯାଏ, ତାକୁ ରାତିରେ ଖାଇ ଦିନସାରା ସେହିପରି ଠେକା ଆସନ ଭିଡ଼ି ବସିଥାଆନ୍ତି । ଏହିପରି କ୍ରମେ ବହୁ ଲୋକଙ୍କ ଯା ଆସ ସେଠିକି ହେଲା । ପିଲା ପରୀକ୍ଷାରେ ପାସ୍ କରିବା ପାଇଁ, ମାଇପେ ପିଲାଛୁଆ ହେବା-ପାଇଁ, ମକଦ୍ଦମା କରିବାବାଲାଲୋକ ଡିଗ୍ରୀ ପାଇବା ପାଇଁ, ଏହିପରି ବହୁପ୍ରକାରର ଲୋକ ଶୂନ୍ୟେ ଶୂନ୍ୟେ କାମ ହାସଲ କରିବା ପାଇଁ ବାବାଜୀଙ୍କଠିଁ ଆସିବାରେ ଲାଗିଲେ । ସମସ୍ତେ ମୁଣ୍ଡିଆ ମାରି କିଛି ନା କିଛି ଭେଟି ଦିଅନ୍ତି । ବାବାଜୀ ତ' ସବୁ ଖାଇ ପାରିବେ ନାହିଁ । ବହୁ ଜିନିଷ ଠେଣିକି ବାଣ୍ଟିବାରେ ଲାଗିଲେ । ଏସବୁ କଥା ଦେଖି ସେ ଗାଆଁରେ ଏକ ଅଳସୁଆ ଲୋକ ଥିଲା, ସେ ଦେଖିଲା, ବାବାଜୀ ଠେକା ଆସନ ମାଡ଼ି ମୌନରେ ବସିଛି, ତା' ପାଖକୁ ଏତେ ଜିନିଷ ଆପେ ଆପେ ଆସୁଛି, ସେ ମଧ୍ୟ ସେହିପରି ବାବାଜୀ ଜଣେ ହେବ । ଏହିପରି ଭାବି ସେ ଅଳସୁଆ ଲୋକଟି ବାବାଜୀଙ୍କ ଗୋଡ଼ତଳେ ପଡ଼ି ଦୀକ୍ଷା ନେବ ବୋଲି କହିଲା । ବାବାଜୀ ଠାରିଠୁରି ଭାବରେ କହିଲେ, ଦେଖ, ଏ ସାଧନା ବଡ଼ କଷ୍ଟ, ତୁମେ ପାରିବ ନାହିଁ । ଅଳସୁଆ ଲୋକଟି ଜବାବ ଦେଲା ଯେ, ସେ ମନଦେଇ ସେ ସାଧନା କରିବ । ବାବାଜୀ ସେଇଠୁ କହିଲେ, ଆଚ୍ଛା ଯାଅ, ରାତି ଘଡ଼ିଏ ଥାଉ ଖୁବ୍ ଧାରୁଆ ଛୁରୀ ଗୋଟିଏ ନେଇ ମୋ ପାଖକୁ ଆସିବ । ମୁଁ ଦୀକ୍ଷା ଦେବି । ସେ ଅଳସୁଆ ଲୋକଟି ଖୁସି ହୋଇଗଲା । ସେହିଦିନ କମାରଶାଳକୁ ଯାଇ ଛୁରୀରେ ଶାଣ ଦେଇ, ରାତି ଘଡ଼ିଏ ଥିଲା ବାବାଜୀଙ୍କଠିଁ ଯାଇ ପହଞ୍ଚିଲା । ବାବାଜୀ ସେ ଛୁରୀଟି ନେଇ କାନରେ ମନ୍ତ୍ର ଦେବେ ବୋଲି କହି ସେ ଅଳସୁଆ ଲୋକର ମୁଣ୍ଡକୁ ଟାଣିଆଣି ତା ନାକଟିକୁ କାଟିଦେଲେ । କହିଲେ, ଏହା ହେଉଛି ମୋର ସାଧନା । ମୋ ନାକକୁ କାଟିଲା ମୋ ପଡ଼ଶା, ମୁଁ ହେଲି ବାବାଜୀ । ତୋ ନାକକୁ ମୁଁ କାଟିଲି ତୁ ଯା ଏଠୁ, ହେବୁ ବାବାଜୀ । ତୁ ପୁଣି ଆଉ କାହା ନାକ କାଟି ତାକୁ ବାବାଜୀ କରାଇବୁ । ଏହିପରି ଏକ ନାକକଟା ବାବାଜୀ ଦଳ ହୋଇଯିବେ ।

କିନ୍ତୁ ଏ କଥାକୁ ଶୁଣୁଛି କିଏ । ଅଳସୁଆ ଲୋକର ନାକ କଟିଯିବାରୁ ସେ କାନ୍ଦିବୋବେଇ ଆସି ଘରେ ପହଞ୍ଚି ସମସ୍ତଙ୍କୁ କହିଲା । ଗାଁ ବାଲା ରାଗିମାଗି ବାବାଜୀଠାରେ ପହଞ୍ଚିଲେ । ବାବାଜୀ ନିଜ ମୁହଁରୁ ଲୁଗା ଫିଟାଇ ସମସ୍ତଙ୍କୁ ଦେଖେଇଲେ

ତାଙ୍କ ନିଜ ଗାଙ୍କ କଥା । ଏତେଦିନ ଯେ ବାବାଜୀଙ୍କୁ ସମସ୍ତେ ଭେଟି ଦେଉଥିଲେ ସେଥିରେ ସମସ୍ତଙ୍କୁ ଲଜ୍ଜା ହେଲା ।

ଜଣେ ବୁଢ଼ା କହିଲା, ବାବାଜୀ କଅଣ କାହା ଦୁଆରକୁ ଯାଇଥିଲେ ? ତୁମେ ତ ସବୁ ଆପେ ଆସି ତାଙ୍କଠି ହେଉଥିଲ ! ନିଜେ ଯଦି ମୂର୍ଖ ହେବ, ଦୋଷ ଦେବ କାହାକୁ ?



# ଦୃଢ଼ ତଟରୁ କି ମୂଢ଼ ତଟରୁ

ଘଟଣାଟି ହେଉଛି କଳ୍ପନାରେ ବାରାଣସୀ ଗଙ୍ଗାତଟ । ବଡ଼ସକାଳୁ ପଣ୍ଡିତେ ଡାହାଣ କାନରେ ପଇତା ଗୁଡ଼ାଇ ଦେଇ ବାଁ ହାତରେ ଦାନ୍ତଘଷା ଗୁଡ଼ାଖୁ ଓ ମୁହଁରେ ନିମ ଦାନ୍ତକାଠି ଖଣ୍ଡେ ଚୋବାଇ ଚୋବାଇ ଯାଉଛନ୍ତି । ହଠାତ୍ ଜଣେ ପୋଲିସ କନେଷ୍ଟବଲ ଆସି ଧରିନେଲା ପଛଆଡ଼ୁ । ପଣ୍ଡିତେ ଅବାକ୍ ହୋଇ ଚାହିଁଲେ । କନେଷ୍ଟବଲ ହାତଧରି ଟାଣିଲା; ଚାଲ ଥାନାକୁ, ସେଠି ଆଜି ପୋଲିସ ସାହେବ ଆସିବେ ଦିନ ଦଶଟାକୁ, ଥାନା ହତା ସଫା ହେବ, ଚାଲ ଜଲ୍‌ଦି । ପଣ୍ଡିତେ ଭୟରେ ଥରହର । କିଛି କହିପାରିଲେ ନାହିଁ, ନିରୀହ ମେଣ୍ଢାଟି ପରି କନେଷ୍ଟବଲ ସାଙ୍ଗରେ ଗଲେ ।



ପୂର୍ବ ଘଣ୍ଟାକି ହେଉଛି, ଥାନା ଅଫିସର ରାତରେ ମଦ ପିଇ ଶୋଇ ପଡ଼ିଲେ । ସକାଳେ ସୁପରିଣ୍ଟେଣ୍ଡେଣ୍ଟ ଆସିବା କଥା ଭୁଲିଗଲେ । ସକାଳେ ନିଦ ଭାଙ୍ଗିବା ମାତ୍ରେ ମନେ ପଡ଼ିଗଲା ସାହେବ ଆସିବା କଥା । କନେଷ୍ଟବଲଙ୍କୁ ଡାକି କହିଲେ—'ଯାଅ, ଦି ଚାରିଜଣ କୁଲି ଡାକିଆଣ । ନମ୍ରଭାବରେ କନେଷ୍ଟବଲ କହିଲା, 'ହଜୁର, ଏ ରାତିପାହାନ୍ତା ସକାଳେ କୁଲି କେଉଁଠୁ ମିଳିବେ । ଥାନା ଅଫିସର ରାଗିଯାଇ ତମତମ ହୋଇ କହିଲେ, 'ପୋଲିସ ଚାକିରି କରିଛ, କୁଲି ପାଇବ ନାହିଁ, ଚାକିରି ତୁମେ ଛାଡ଼ିଦିଅ । କିଛିଏ ଶାନ୍ତ ହୋଇଯାଇ କହିଲେ, 'ଯାଅ ନଈକୂଳକୁ, ସକାଳୁ ସକାଳୁ ବହୁଲୋକ ଯାଉଥିବେ ଗାଧୁଆପାଧୁଆ କରିବା ପାଇଁ । ଧରିଆଣ ସେଇଠୁ ଦି' ଚାରିଜଣ' । କନେଷ୍ଟବଲ ଦୌଡ଼ିଗଲା । ଧରିଲା ଯାଇଁ ଉପରୋକ୍ତ ପଣ୍ଡିତଙ୍କୁ ।

ପଣ୍ଡିତେ ଦାନ୍ତଘଷା, ଝାଡ଼ାଫେରା, ଗାଧୁଆ, ସବୁ ଛାଡ଼ି ଥାନାହତା ସଫାରେ ନଅଟା ପର୍ଯ୍ୟନ୍ତ ଖଟିଲେ । ସେଠୁ ଫେରି ନିତ୍ୟକର୍ମ ସାରି ସ୍କୁଲକୁ ଯିବାକୁ ସାଢ଼େଦଶଟା ହୋଇଗଲା । ଦୁର୍ଯୋଗବଶତଃ ସେଦିନ ସ୍କୁଲ ଇନସପେକ୍ଟର ଆସିଛନ୍ତି ସ୍କୁଲ ପରିଦର୍ଶନ କରିବାକୁ । ସ୍କୁଲ ଠିକ୍ ସମୟରେ ହେଉଛି କି ନା ପରୀକ୍ଷା କରିବା ପାଇଁ । ଆଗରୁ ଖବର ନ ଦେଇ ଆସି ପହଞ୍ଚିଗଲେ ଠିକ୍ ଦଶଟାବେଳେ । ସୌଭାଗ୍ୟକ୍ରମେ ହେଡ଼୍‌ମାଷ୍ଟର ଥିଲେ ଓ ଅନ୍ୟ ଶିକ୍ଷକମାନେ ଥିଲେ, କିନ୍ତୁ ପଣ୍ଡିତେ ନ ଥିଲେ । ଇନସପେକ୍ଟର ରୁକ୍ଷ ସ୍ୱରରେ ହେଡ଼୍‌ମାଷ୍ଟରଙ୍କୁ ପଚାରିଲେ, 'ତୁମେ ସ୍କୁଲରେ ଶୃଙ୍ଖଳା ରକ୍ଷା କରିପାରୁନାହିଁ । ଶିକ୍ଷକମାନେ ଠିକ୍ ସମୟରେ ଆସୁନାହାନ୍ତି । ଏଥିରୁ ଜଣାପଡ଼ୁଛି, କଅଣ ଏଠି ପଢ଼ା ହେଉଥିବ । ହେଡ଼୍‌ମାଷ୍ଟର ନାନା କଥା କହି ଉତ୍ତର ଦେଉଥିଲେ । ଏହି ସମୟରେ ପଣ୍ଡିତେ ପହଞ୍ଚିଗଲେ । ତାଙ୍କରି ସାମନାରେ ହେଡ଼୍‌ମାଷ୍ଟର କହିଲେ, ଏହାଙ୍କୁ ମୁଁ ବରାବର ତାଗିଦ୍ କରୁଛି । ଏ ବରାବର ଡେରିରେ ଆସୁଛନ୍ତି । ଏହାଙ୍କ ପ୍ରତି ଦଣ୍ଡବିଧାନ ପାଇଁ ମୁଁ ଲେଖିବି ବୋଲି ସ୍ଥିର କରିଛି । ଇନସ୍‌ପେକ୍ଟର ପଣ୍ଡିତଙ୍କୁ କଡ଼ା ସ୍ୱରରେ ପଚାରିଲେ, 'ତମେ ଛାତ୍ରମାନଙ୍କୁ କି ଆଦର୍ଶ ଦେବ, ଠିକ୍ ସମୟରେ ସ୍କୁଲକୁ ଆସୁନାହଁ, ତୁମକୁ କାହିଁକି ବରଖାସ୍ତ କରା ନ ଯିବ, କୈଫିୟତ ଦିଅ' । କୈଫିୟତ ବିଚାର ପର୍ଯ୍ୟନ୍ତ ତୁମକୁ ସସ୍‌ପେଣ୍ଡ କରାଗଲା । କାନମୁଣ୍ଡ ଆଉଁସି ପଣ୍ଡିତେ ସ୍କୁଲ ବାରଣ୍ଡାରେ ବସିଲେ । ସ୍କୁଲରେ ଶୃଙ୍ଖଳା ରକ୍ଷା କରୁଛନ୍ତି ବୋଲି ହେଡ଼୍‌ମାଷ୍ଟର ସାର୍ଟିଫିକେଟ ପାଇଲେ । ଶୃଙ୍ଖଳା ରକ୍ଷା ପାଇଁ ସେ ପଣ୍ଡିତଙ୍କୁ ବାରଣ୍ଡାରୁ ଚାଲିଯିବା ପାଇଁ କହିଲେ ।

'କି ଅପରାଧରେ ମୋତେ ଈଶ୍ୱର ଏ ଦଣ୍ଡ ଦେଲେ । ସକାଳେ ମୋତେ ଥାନା ସଫା କରାଇଲେ; ପୁଣି ଶେଷରେ ମୋର ଚାକିରି ନେଲେ ।' —ଏ ଚିନ୍ତା ପଣ୍ଡିତଙ୍କୁ ଏତେ ଅସ୍ଥିର କଲା ଯେ ସେ ଗଲେ ଆଶ୍ରମରେ



ଜଣେ ବଶିଷ୍ଟ ସାଧୁ ଅଛନ୍ତି, ତାଙ୍କପାଖକୁ । ଏ ସାଧୁଙ୍କର ଆଧ୍ୟାତ୍ମିକ ଖ୍ୟାତି ଅଛି । ସେ ମଧ୍ୟ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ କିଛିକାଳ କାମ କରିଥିଲେ । ପଣ୍ଡିତେ ସାଧୁ ମହାରାଜଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଦୁଃଖରେ ସବୁକଥା ଟିକିନିଖି କହିଲେ । କାନ୍ଦି କାନ୍ଦି କହିଲେ, 'ମୋର କି ଅପରାଧ—ମୁଁ ଏପରି ଦଣ୍ଡ କାହିଁକି ପାଇଲି ?'

ସାଧୁ ଧୀର ସ୍ୱରରେ ବୁଝାଇ କହିଲେ, 'ଶାସ୍ତ୍ରରେ ଅଛି, ଦୃଢ଼ ତରେ କି ମୂଢ଼ ତରେ, ମଝିମଝିକିଆ ବୁଡ଼ି ମରେ । ତମେ ଦୃଢ଼ ନୁହଁ କି ମୂଢ଼ ନୁହଁ । ତେଣୁ ତୁମ ଦଣ୍ଡ ପାଇଁ ତୁମେ ନିଜେ ଦାୟୀ ।

ତା'ପରେ ସାଧୁ ବୁଝାଇଲେ, 'ତୁମକୁ ଯେତେବେଳେ କନେଷ୍ଟବଳ ଟାଣିକି ନେଲା, ତୁମେ ଦୃଢ଼ ହୋଇ କହିଥାନ୍ତ ମୁଁ ଯିବିନାହିଁ, ଏଇଠି ବସିଲି । କିମ୍ବା ମୂଢ଼ ହୋଇଥିଲେ ମିଛରେ କହିଥାନ୍ତ, ମୋତେ ଭରି ଜୋର୍ ଝାଡ଼ା ମାଡ଼ୁଛି, ମୁଁ ଯାଇ-ପାରିବି ନାହିଁ । ଏ ଦୁଇଟିରୁ ଗୋଟିଏ କରିଥିଲେ କନେଷ୍ଟବଳ ତୁମକୁ ଛାଡ଼ି ଅନ୍ୟ କାହାକୁ ଧରିବାକୁ ଯାଇଥାଆନ୍ତା । ତା ପରେ ତମ ସାମନାରେ ହେଡ଼ମାଷ୍ଟର ଯେତେ-ବେଳେ କହିଲେ, ତମେ ବରାବର ବିଳମ୍ବରେ ସ୍କୁଲକୁ ଆସୁଛ, ତମେ ଦୃଢ଼ ହୋଇଥିଲେ 'ଏହା ମିଥ୍ୟା' ବୋଲି କହି କନେଷ୍ଟବଳ ଦ୍ୱାରା ଧରାହେଲି ବୋଲି କହିଥାନ୍ତ ଏବଂ ସଙ୍ଗେ ସଙ୍ଗେ ଇନ୍‌ସ୍-ପେକ୍ଟରଙ୍କୁ କହିଥାନ୍ତ, ସେ ତଦନ୍ତ କରି ଥାନା ଅଫିସର ବିରୁଦ୍ଧରେ ଉପରକୁ ଲେଖନ୍ତେ । ମୂଢ଼ ହୋଇଥିଲେ ଓଲଟା ଦୋଷାରୋପ କରିଥାନ୍ତ ହେଡ଼ମାଷ୍ଟରଙ୍କ ବିରୁଦ୍ଧରେ—ସେ ଅସାଧୁ, ଶିକ୍ଷକମାନଙ୍କୁ ହଇରାଣ କରନ୍ତି, ସ୍କୁଲକୁ ସବୁଦିନେ ଆସନ୍ତି ନାହିଁ ଇତ୍ୟାଦି । ଏହା ହୋଇଥିଲେ ଇନସ୍‌ପେକ୍ଟର ସବୁ ତଦନ୍ତ କରିବା ପାଇଁ ସମୟ ନ ଥିବାରୁ ବିରକ୍ତ ହୋଇ ଏଣୁତେଣୁ କିଛି କହି ଚାଲିଯାଇଥାନ୍ତେ । ଦୁନିଆରେ ଦୃଢ଼ଙ୍କର ସବୁବେଳେ ସ୍ଥାନ ଅଛି, ଚତୁର ମୂଢ଼ଙ୍କର ମଧ୍ୟ କେଉଁଠି କେମିତି ସ୍ଥାନ ଅଛି, କିନ୍ତୁ ଭୀରୁ ନିର୍ବୋଧଙ୍କର ସ୍ଥାନ କେଉଁଠାରେ ନାହିଁ' ।

# ଗୋଟିଏ ପିଲାର ଦୁଃସାହସ

ରୁଷିଆରେ ଓ ଆମେରିକାରେ ମହାଶୂନ୍ୟକୁ ଛୋଟ ଛୋଟ ଉପଗ୍ରହସବୁ ଛାଡ଼ି ସେମାନଙ୍କୁ ଆମର ଏ ପୃଥିବୀ ଚାରିପଟେ ଘୂରାଉଛନ୍ତି । ଏ ଖବର ପାଇ ଗୋଟିଏ ପିଲାର ମନ ହେଲା, ସେହି ଉପଗ୍ରହ ଭିତରେ ପଶି ସେ ଯାଇ ଶୂନ୍ୟରେ ବୁଲିଆସନ୍ତା !

ସେ ପିଲାର ନାମ କୁହାଯିବ ନାହିଁ । କାରଣ ସେପରି ପିଲା ଆଜିଯାଏ କେହି ହୋଇନାହାନ୍ତି । ମାତ୍ର ଦିନେ କେହି ହେବ ।

ପିଲାଟି ଖବରକାଗଜରୁ ପଢ଼ିଲା ଯେ ସ୍ପୁଟ୍‌ନିକ ବା ରୁଷିଆର କୃତ୍ରିମ ଉପଗ୍ରହ ଭିତରେ କୁକୁରକୁ ଶୂନ୍ୟକୁ ପଠାଇଛନ୍ତି । ସେହିଦିନୁ ତା'ର ମନ ହେଲା ଯେ ସେ ନିଜେ ଗଲାପରି କୃତ୍ରିମ ଉପଗ୍ରହରେ ଶୂନ୍ୟରେ ବୁଲିବ ।



ଏହି କଥା ମନରେ ଭାବି ସେ ରୁଷିଆ ଓ ଆମେରିକାର ବୈଜ୍ଞାନିକମାନଙ୍କଠାକୁ ଲେଖିଲା ତା'ର ମନ କଥା । ବୈଜ୍ଞାନିକମାନେ ଏହି ପିଲାର ଚିଠି ପାଇ ଆନନ୍ଦିତ ଯେତିକି ହେଲେ, ବିସ୍ମିତ ମଧ୍ୟ ସେତିକି ହେଲେ । ଆନନ୍ଦିତ ହେଲେ ଏଥିପାଇଁ ଯେ ଭାରତବର୍ଷର ଗୋଟିଏ ପିଲାର ଏପରି ସାହସ ଅଛି । ବିସ୍ମିତ ହେଲେ ଯେ ପିଲାଟି ଖାଲି ଶୂନ୍ୟଠାରେ ବୁଲି କିଅଣ ବା ଦେଖିବ ବୋଲି ଭାବୁଛି ।

କିନ୍ତୁ ପିଲାଟିର ସେଇ ଚିଠିଟିକୁ ସେମାନେ ଯତ୍ନରେ ରଖିଲେ । ଅଳ୍ପଦିନ ଭିତରେ ବୈଜ୍ଞାନିକମାନେ ବୁଦ୍ଧି ଖଟେଇ କରି ଗୋଟିଏ ଯନ୍ତ୍ର ବାହାର କଲେ ଯେ ସେଥିରେ ଜଣେ ପିଲାକୁ ଚନ୍ଦ୍ରଲୋକକୁ ପଠାଇ ଦେଇହେବ । କିନ୍ତୁ ସେଠୁ ପୁଣି ତାକୁ ତଳକୁ ଆଣିହେବ କି ନା ସେ ବିଷୟରେ ସେମାନେ ନିଶ୍ଚିତ ନୁହନ୍ତି । ଏ ଖବର ସମ୍ବାଦପତ୍ରରେ ପ୍ରକାଶିତ ହେବାମାତ୍ରକେ ପିଲାଟି ତାର ଦ୍ୱାରା ଜଣାଇଲା ଯେ ସେ ଯିବ ଚନ୍ଦ୍ରଲୋକକୁ, ସେଠୁ ନ ଫେରି ପାରିଲେ ତା'ର ଚିନ୍ତା ନାହିଁ । ଏପରି ଦୁଃସାହସିକ ପିଲାର ତାର ପାଇ ବୈଜ୍ଞାନିକମାନେ ପିଲାର ବାପା-ମାଆଙ୍କଠାରୁ ସ୍ୱୀକୃତି ଚାହିଁଲେ । ବାପା-ମାଆ ପ୍ରଥମେ ରାଜି ହେଉ ନ ଥିଲେ । କିନ୍ତୁ ପିଲା ଜିଦ୍ ଧରି ବସିଲା ଯେ ସେ ଯିବ ଚନ୍ଦ୍ରଲୋକକୁ । 'କିରେ ତୁ ତ ସେଠିକି ଯିବୁ, ଫେରିବୁ କିପରି ?' ଏହାର ଉତ୍ତରରେ ପିଲା ଜିଦ୍ ସହକାରେ କହିଲା, 'ଯାଏଁ, ସେଠିକି, ଫେରିଲେ ଫେରିବି ନ ଫେରିଲେ ନାହିଁ ।'

ପିଲାର ଜିଦ୍ ଦେଖି ବାପା ମାଆ ରାଜି ହେଲେ ।

ପିଲାଟି ସେହି ଯନ୍ତ୍ରରେ ବସି ଚନ୍ଦ୍ରରେ ଯାଇ ପହଞ୍ଚିଗଲା । ସେଠି ସେ ଓହ୍ଲାଇପଡ଼ିଲା ମାତ୍ରକେ ତାକୁ ତା'ର ପରି ଆହୁରି ଅନେକ ପିଲା ଆସି ଘେରିଗଲେ । ସେଠିକା ପିଲା ସବୁ ଶୁଣିଛନ୍ତି ଯେ ପୃଥିବୀରୁ ଜଣେ ଦୁଃସାହସିକ ପିଲା ଆସୁଛି ବୋଲି । ବାହାର ପିଲାକୁ ଘେରିଯାଇ ଚନ୍ଦ୍ରଲୋକର ପିଲାସବୁ ମାରିବା ପାଇଁ ବସିଲେ । କିନ୍ତୁ ପୃଥିବୀରୁ ଯେ ପିଲାଟି ଯାଇଥିଲା ସେ କୁଦି ପାରେ । ସ୍କୁଲରେ ସେ ହାଇଜମ୍ପ୍‌ରେ ପ୍ରଥମ ହୁଏ । ପୃଥିବୀ ତାର ମାଧ୍ୟାକର୍ଷଣ ଶକ୍ତିଯୋଗୁଁ ସବୁକୁ ତଳକୁ ଟାଣେ । ତେଣେ ଉପରେ ବାୟୁମଣ୍ଡଳର ଚାପ ଅଛି । ଏଣୁ ଡେଇଁବା କୁଦିବା ମଣିଷ ଓ ଅନ୍ୟ ପ୍ରାଣୀ ଜାଣନ୍ତି । କିନ୍ତୁ ଚନ୍ଦ୍ରଲୋକରେ ମାଧ୍ୟାକର୍ଷଣ ଶକ୍ତି ସେପରି ନାହିଁ କି ବାୟୁମଣ୍ଡଳର ଚାପ ନାହିଁ । ତେଣୁ ସେଠା ପିଲାସବୁ ଡେଇଁ କୁଦି ଜାଣନ୍ତି ନାହିଁ । ପୃଥିବୀର ପିଲା ଯେପରି ଡିଆଁ ମାରି ପଳାଇବା ପାଇଁ ବସିଲା, ଚନ୍ଦ୍ରଲୋକର ପିଲାମାନେ ପାରିଲେ ନାହିଁ । ସେମାନେ ଏ ପିଲାର ଡିଆଁ କୁଦା ଦେଖି



ବିସ୍ମିତ ହୋଇ ପଳାଇଲେ । କିନ୍ତୁ ସେଠି ବାୟୁମଣ୍ଡଳର ଚାପ ନ ଥିବାରୁ ପୃଥିବୀର ପିଲାଟି ଯେମିତ ଖୁବ୍ ଜୋର୍‌ରେ ଡିଆଁ ମାରି ଦେଇଛି—ସେ ଶୂନ୍ୟକୁ ଉଡ଼ିଗଲା ।

ଏଣେ ତଳକୁ ଟାଣିବା ଶକ୍ତି ଚନ୍ଦ୍ରର ନ ଥିବାରୁ ପିଲା ତ ଆଉ ତଳକୁ ଆସିପାରୁ-ନାହିଁ । ଶୂନ୍ୟରେ ରହି ପିଲାଟି ବାପମାଆ ସାଙ୍ଗସୁଖ ସମସ୍ତଙ୍କୁ ମନେପକେଇଲା । କିପରି ବା ତଳକୁ ଆସିବ । ଏକୁଟିଆ ବହୁଦିନ ସେହିପରି ଶୂନ୍ୟରେ ଭାସି ଭାସି ବୁଲିଲା । ସେଠି ଭୋକ ଶୋଷ ବି ଲାଗୁ ନ ଥାଏ ।

ଶେଷରେ ଆଉ ଏକ କୃତ୍ରିମ ଉପଗ୍ରହ ଶୂନ୍ୟରେ ବୁଲୁବୁଲୁ ସେ ପିଲାକୁ ହାବୁଡ଼ିଲା । ପିଲା ସେଇଟାକୁ ଧରି ତା ରି ଉପରେ ଚଢ଼ି ବସିଲା । ସେ କୃତ୍ରିମ ଉପଗ୍ରହରେ ତଳକୁ ଫେରିବାର ବ୍ୟବସ୍ଥା ଅଛି । କୃତ୍ରିମ ଉପଗ୍ରହରେ ପ୍ରାୟ ବର୍ଷେ ଖଣ୍ଡେ ବିଶ୍ୱ-ସାରା ବୁଲି ପିଲା ଆସି ପହଞ୍ଚିଲା ପୁଣି ପୃଥିବୀରେ । ପିଲାର ଫଟୋ ସବୁ ଖବରକାଗଜରେ ବାହାରିଲା । ହଜାର ହଜାର ଲୋକ ତାକୁ ଦେଖିବାକୁ ଆସିଲେ । ତା ପରେ ସେ ଆସି ତା ଘରେ ପହଞ୍ଚିଲା ।

ତାକୁ ତା' ସାଙ୍ଗ ପିଲାସବୁ ପଚାରିଲେ, ଚନ୍ଦ୍ରଲୋକ କଥା, ମହାଶୂନ୍ୟ କଥା । ପିଲା ତ ଖାଲି କହିଦେଲା 'ସାହସ ବାନ୍ଧି ଜୀବନକୁ ମହାଶୂନ୍ୟକୁ ଫୋପାଡ଼ିଦେଲେ ବି ସେଠୁ ସେ ଗୌରବ ଅର୍ଜନ କରି ଫେରିବ ।'

ସବୁ ପିଲା ତ ଏ କାହାଣୀ ଶୁଣି ଅବାକ ।

# ସର୍ବଜାନ୍ତା



ମୋ ଗପଗୁଡ଼ିକ ବହୁତ ଲମ୍ବା ହେଉଛି ନା, ପଢ଼ୁଁ ପଢ଼ୁଁ ଢୁଳ ଲାଗି ଯାଉଥିବ । ଆଚ୍ଛା, ଛୋଟ ଛୋଟ ଗପ ଶୁଣ । ଦେବରାଣୀ ବୋଲି ଏକ ଝିଅ ପିଲାଦିନୁ ବଡ଼ ଗେହ୍ଲାରେ ବଢ଼ିଲା । ବାପାମାଆଙ୍କର କିଛି ସମ୍ପତ୍ତିବାଡ଼ି ଥିଲା । ଝିଅକୁ କିଛି କାମ କରିବାକୁ ଦିଅନ୍ତି ନାହିଁ । ରନ୍ଧାବଢ଼ା ହେଉକି ଘରକାମ, ଏପରିକି ଘର ଝାଡ଼ିବା ତାଙ୍କୁ ଜଣାନାହିଁ । ବାପା ମାଆଙ୍କ ଅଳିଅଳି ଝିଅ ହୋଇ ବଢ଼ିଲା । ତା ଭାଇ ଦେବରାଜ ମଧ୍ୟ ସେହିପରି ପିଲାଦିନୁ ଗେହ୍ଲା ପୁଅ ହୋଇ ପାଠ ପଢ଼ିଲା । ପାଠପଢ଼ା ସାଙ୍ଗକୁ ଢଙ୍ଗରଙ୍ଗ ସିନା ଶିଖିଲେ ହୁଅନ୍ତା, କିଛି ସେ ଶିଖିଲା ନାହିଁ । ଭାଇ ଭଉଣୀ ଦିହେଁଯାକ ଉପରମୁହାଁ ହୋଇଗଲେ । କାହାରିକୁ ଖାତିର ନାହିଁ, କାହାରିଠାରୁ କିଛି ଯେ ଶିଖିବାର ଅଛି, ଏକଥା ମାନନ୍ତି ନାହିଁ । ନିଜକୁ ନିଜେ ସେମାନେ ସର୍ବଜାନ୍ତା ଭାବି ଚଳିଥାନ୍ତି ।

ଦେବରାଣୀର ବିବାହ ବୟସ ହେବାରୁ ବରଟିଏ ଠିକ୍ କରି ତାକୁ ବାହା କରେଇ ଦେଲେ । ଯେ ବାହାହେଲା, ସେ ବୁଝିଲା ନାହିଁ ଯେ, ବୋହୂ ଘର କାମ ଜାଣେ କି ନାହିଁ । ସେ ଯୌତୁକ ଲୋଭରେ ବାହା ହୋଇଗଲା । ତା ପରେ ବୋହୂ ଯେତେବେଳେ କିଛି କାମଦାମ କଲାନାହିଁ, ତା'ପାଇଁ ଏକ ଦାସୀ ଦରକାର ପଡ଼ିଲା । ସେତେବେଳେ ସେ ଏକ ବୁଦ୍ଧି ପାଞ୍ଚିଲା, ବୋହୂକୁ ଓ ତା' ଘରକୁ ଏକ ଶିକ୍ଷା ଦେବ । ବୋହୂ ତା' ଲମ୍ବାଚୌଡ଼ା କଥା କହେ । ତା' ବାପଘରେ କେତେରକମ ଜିନିଷ ରନ୍ଧା ହୁଏ, କିପରି ରନ୍ଧା ହୁଏ, ସେ ସବୁ ଜାଣେ । ସ୍ୱାମୀ

ବୋହୂକୁ କହୁଲା, କଅଣ ତୁମ ଘରେ ଖିରୀ କରି ଖାଆନ୍ତି ପରା—ତୁମେ ଖିରୀ କରି ଜାଣ ? ବୋହୂ ହାତ ହଲେଇ କହିଦେଲା—ଖିରୀ ଆମରି ଦି ଓଳି ହୁଏ—ଖିରୀ କରିବାର କଅଣ ଅଛି । ମୁଁ ଚୂଲି ପାଖରେ ବସିଲେ ଖିରୀ ହୋଇଯିବ । କିନ୍ତୁ ମୁଁ କାହିଁକି ଚୂଲି ପାଖକୁ ଯିବି ? ମୁଁ କଅଣ ଏଠିକି ଆସିଛି ରୋଷେଇବାସ କରିବା ପାଇଁ

ଏହା କହି ବୋହୂ ଦେବରାଣୀ ... ଛାଡିଦେଇ ଚାଲିଗଲା । ସ୍ୱାମୀ ଚଲାଖିରେ ମୁହଁ ଶୁଖେଇ କହିଲା, ଶୁଣ ଶୁଣ, ଆମ ଲାଗି ନୁହେଁ ଯେ ତୁମ ଭାଇ ଦେବରାଜଙ୍କୁ ଆଜି ଖାଇବା ପାଇଁ ଡାକିଛି । ରାତିକି ଆସିବେ । ତାଙ୍କରି ପାଇଁ ଟିକିଏ ଖିରୀ କରିଦିଅ ।

ବହୁତ କହିବାରୁ ଭାଇ ପାଇଁ ଖିରୀ ତିଆରି କରିବାକୁ ରାଜି ହୋଇ ଦେବରାଣୀ କହିଲା, ଜିନିଷ ଆଣ—ମୁଁ କରି ଦେଉଛି । ସ୍ୱାମୀ ପଚାରିଲା, କି ଜିନିଷ ? ଦେବରାଣୀ ଆଉ କହିପାରୁ ନାହିଁ । କାରଣ ସେ ନିଜେ ଜାଣେ ନାହିଁ । ବହୁତ ମନେ ପକାଇ କହିଲା, ଚାଉଳ, ଦୁଧ, ଆଉ ସେ ଯାହା ଧୂଳୁଲା ଧୂଳୁଲା ସେଥିରେ ପକାନ୍ତି । ସ୍ୱାମୀ ଆଣିଦେବ ବୋଲି କହିଯାଇ ଚାଉଳ, ଦୁଧ, ଓ ଖୁବ୍ ସଫେଦ ଲୁଣ କିଛି ଆଣିଦେଲା ।

ଦେବରାଣୀ ଚୂଲି ପାଖକୁ ଗଲା, କିନ୍ତୁ ଚୂଲି ଲଗେଇ ପାରୁନାହିଁ । ତା' ଶାଶୁ ଚୂଲି ଲଗେଇଲା । ଦେବରାଣୀ ଖାଲି ହୁକୁମ ଦେଲା । ଦୁଧ ଗରମ ହୋଇ ଚାଉଳ ଫୁଟିଆସିଲା ବେଳକୁ ଦେବରାଣୀ ସେ ଲୁଣକୁ ନେଇ ସେଥିରେ ପକାଇଦେଲା । ଏଇ ତ ହୋଇଗଲା, ଆଉ କ'ଣ ? ଏହା କହି ରୋଷେଇ ଘରୁ ପଳାଇ ଆସିଲା । ରାତିରେ ଦେବରାଜ ଯେତେବେଳେ ଖାଇବା ପାଇଁ ଆସିଲେ, ଖୁବ୍ ଲମ୍ବାଚୌଡ଼ା କଥା କହିଲେ । ଦେବରାଣୀ ସେଥିରେ ଯୋଗ-ଦେଇ କହିଲା—ସ୍ୱାମୀଙ୍କ ଘରେ ଖିରୀ କରି ଜାଣନ୍ତି ନାହିଁ । ମୁଁ ନିଜେ ଯାଇ ଖିରୀ ତିଆରି କରିଛି । ଏ କଥା ଶୁଣି ଦେବରାଜ ଭାରି ଖୁସି ହୋଇ ବାହା ହଲେଇ କହିଲେ—ଆମକୁ ରାନ୍ଧିବା ସୁଦ୍ଧା ଶିଖେଇବାକୁ ପଡ଼ିବ । ଦେବରାଣୀର ସ୍ୱାମୀ ଚୁପ ହୋଇ ସବୁ ଶୁଣୁଥାଏ ।

ଖାଇବସିଲା ପରେ ଯେତେବେଳେ ଖିରୀ ଆସିଲା, ଦେବରାଣୀ ନିଜେ ଚାଟୁ ନେଇ ଖୁବ୍ ବେଶୀ ଭାଇ ପତରରେ ଦେଇଦେଲେ । ଭାଇ ମୁହଁକୁ ନେଇ ବାନ୍ତି କରିବା ପାଇଁ ଓକାଳ ହେଲେ । ଦେବରାଣୀ ଟିକିଏ ପାଟିକୁ ନେଇ କାଢ଼ି ପକାଇଲା । ତା' ସ୍ୱାମୀ କହୁଛି, ଖାଅ ଖାଅ—ନିଜ ଭଉଣୀ ହାତରନ୍ଧା, ଆମକୁ ତ' ରନ୍ଧା ଶିଖେଇବ, ଖାଅ ଖାଅ । ହେଲେ ଖାଇବେ କଅଣ, ପତର ଛାଡ଼ି, ଦେବରାଜ ଛିଡ଼ା ହେଲେ । ଦେବରାଣୀର ମୁହଁ ତଳକୁ । ଏତିକିବେଳେ ସ୍ୱାମୀ ତା' ମନକଥା ଖୋଲି ଖୁବ୍ କହିଲା—ନିଜେ କିଛି କାମ ନ ଜାଣି କାମ ଶିଖେଇବା ପାଇଁ ସବ୍‌ଜାନ୍ତା ହେଉଛୁ, ନା ।

ସେହିଦିନ ପାଖରୁ ଦେବରାଣୀର ମୁହଁ ତଳକୁ ହେଲା—ସେ କାମ ନିଜେ କରିବା ଶିଖିଲା ।

---

# ଇନ୍ଦ୍ରଙ୍କ ରାଜପଦ



ଈଶ୍ୱର ଦେବତାମାନଙ୍କୁ ସୃଷ୍ଟି କରିସାରିଲା ପରେ ଦେବତାମାନଙ୍କ ମଧ୍ୟରେ ବିବାଦ ଲାଗିଲା, କିଏ ସେମାନଙ୍କ ଭିତରୁ ରାଜା ହେବ । ସ୍ୱର୍ଗରାଜ୍ୟ ସୃଷ୍ଟି କରି, ପୁଣି ସେଥିରେ ବସବାସ କରିବା ପାଇଁ ଦେବତା-ମାନଙ୍କୁ ସୃଷ୍ଟି କରି, ରାଜ୍ୟ ବୁଝିବା ପାଇଁ ଜଣେ ରାଜା ଆଉ ଈଶ୍ୱର ସୃଷ୍ଟି କଲେ ନାହିଁ । କାରଣ ରାଜା ହେବାର ଯୋଗ୍ୟତା ହାସଲ କରିବାକୁ ହୁଏ, ତା'କୁ ଈଶ୍ୱର ଦେଇପାରନ୍ତି ନାହିଁ ।

ଦେବତାମାନଙ୍କ ଭିତରେ ସମସ୍ତେ ଚାହାଁଲେ ରାଜା ହେବାପାଇଁ । ପବନ କହିଲେ, "ମୁଁ ମନକଲେ ଦୁନିଆଯାକ ଉଡ଼େଇ ଦେଇପାରିବି, ତେଣୁ ମୁଁ ରାଜା ହେବି ।' ଅଗ୍ନି କହିଲେ, "ମୁଁ ମନକଲେ ଦୁନିଆକୁ ଜାଳିପୋଡ଼ି ପାଉଁଶ କରିଦେଇ ପାରିବି, ତେଣୁ ମୁଁ ରାଜା ହେବି ।' ବରୁଣ କହିଲେ, "ମୁଁ ମନକଲେ ଦୁନିଆକୁ ପାଣିରେ ଭସାଇ ଦେଇ ପାରିବି, ତେଣୁ ମୁଁ ରାଜା

ହେବ । ଏହାପରେ ଛୋଟବଡ଼ ସବୁ ଦେବତା ନିଜ ନିଜର କ୍ଷମତା ଗର୍ବରେ ରାଜା ହେବାପାଇଁ ବସିଲେ ।

ଈଶ୍ୱର ଦେଖିଲେ ଯେ ଏମାନେ କ୍ଷମତା ବଳରେ ରାଜା ହେବାପାଇଁ ବିବାଦ କରି ସ୍ୱର୍ଗପୁରକୁ ଛାରଖାର କରିଦେବେ । ଏମାନଙ୍କ ଭିତରୁ ପ୍ରକୃତରେ ଯେ ରାଜା ହେବାର ଯୋଗ୍ୟ ସେହ୍ୟାକୁ ରାଜା କରିବାକୁ ହେବ ।

ଏହାପରେ ଭାବି ଈଶ୍ୱର ସବୁ ଦେବତା ମାନଙ୍କୁ ଡକାଇ ବୁଝାଇଲେ ଯେ ରାଜାର ଯୋଗ୍ୟତା କ୍ଷମତା ନୁହେଁ । ସମସ୍ତଙ୍କୁ ନେଇ ଚଳିବା ଓ ଅତି ଜରୁରୀ ଅବସ୍ଥାରେ ଖୁବ୍ କମ୍ କ୍ଷମତା ବ୍ୟବହାର କରିବା ହେଉଛି ରାଜାର ଯୋଗ୍ୟତା । ତୁମ ଭିତରୁ କିଏ କି ଭାବରେ ଦୁନିଆକୁ ଚଳାଇ ପାରିବ, କୁହ ।

ଈଶ୍ୱରଙ୍କ ଏକଥା ଶୁଣି ପବନ କହିଲେ, "ମୁଁ ତ ଚାରିଆଡ଼େ ପୂରି ରହିଛି । ଯେ ମନ କରିବ ସେ ମୋ ଠାରୁ ସୁବିଧା ପାଇ ପାରିବ । ଖାଲି ହାତରେ ଚଳାଇଲେ ମୁଁ ଉପକାରରେ ଆସିବ ।" ଅଗ୍ନି ଦେବତା କହିଲେ, "ମୁଁ ତ ସବୁଆଡ଼େ ଅଛି । ଖାଲି ହାତ ଚଳାଇଲେ ମୁଁ କାମରେ ଆସିବ ।" ବରୁଣ କହିଲେ, "ମୁଁ ତ ସମୁଦ୍ର, ପଡ଼ି ରହିଛି—ଯେ ମନ କରିବ ସେ ମୋ ର ସୁବିଧା ପାଇପାରିବ ।" ଏହାପରେ ସମସ୍ତେ ନିଜନିଜର ଯୋଗ୍ୟତା କଥା କହିଲେ ।

ସବୁ ଶୁଣି ଈଶ୍ୱର ପଚାରିଲେ, "ଏ ତ ସବୁ ଭଲକଥା । ଦୁନିଆର ଉପକାର କରିବା ପାଇଁ ତୁମର ଯୋଗ୍ୟତା ଅଛି । କିନ୍ତୁ ଏ ସବୁ ଛଡ଼ା ରାଜ୍ୟର ଆଉ ଏକ ଯୋଗ୍ୟତା ଅବଶ୍ୟକ । ଯାହାର ବେଶୀ ଅଛି ତା ଠାରୁ ଆଣି ତାକୁ ପୁଣି ସମାନ ଭାବରେ, ପାତରଅନ୍ତର ନ କରି ସମସ୍ତଙ୍କୁ ବାଣ୍ଟିଦେବାର ଶକ୍ତି କାହାର ଅଛି କହ ।" ସମସ୍ତେ ଚୁପ ରହିଲେ ।

ଇନ୍ଦ୍ର କହିଲେ, ସମୁଦ୍ରରେ ବେଶୀ ପାଣି ଅଛି । ସେଠୁଁ ପାଣି ଶୋଷିନେଇ ମୁଁ ଦୁନିଆସାରା ସମାନ ଭାବରେ ବର୍ଷା କରିଦେବି । ଖାଲ, ଢିପ, ପର୍ବତ, ସମୁଦ୍ର ସମସ୍ତେ ମୋ' ବର୍ଷାପାଣି ପାଇବେ । ପାଣି ତ' ହେଉଛି ଜୀବନ ଧାରଣର ଉପାୟ । ସେହି ଜନଷଟିକୁ ମୁଁ କିଛି ପାତର ଅନ୍ତର ନ କରି ଦୁନିଆକୁ ଯୋଗାଇବି ।"

ଏ କଥା ଶୁଣି ଈଶ୍ୱର କହିଲେ— "ତାହାହେଲେ ତୁମେ ସ୍ୱର୍ଗରେ ରାଜା ହେବ । ସମସ୍ତଙ୍କୁ ସମ ଭାବରେ ଚଳାଇବାର ବୁଦ୍ଧି ତୁମର ଅଛି ।' ଏ କଥାକୁ ଅନ୍ୟ ଦେବତାମାନେ ସ୍ୱୀକାର କଲେ । ତା ପରେ ଇନ୍ଦ୍ର ସ୍ୱର୍ଗରେ ରଜା ହେଲେ । ———

# କାଣିଆ କପିଳା



କାଣିଆ କପିଳା ଦୁହେଁଯାକ ପିଲାଦିନୁ ବଡ଼ ସାଙ୍ଗ । ଗରିବ ଘରର୍ ପିଲା । ଏକା ସାଙ୍ଗରେ ଗାଈ ଚରାଇବାକୁ ଯାଆନ୍ତି । ଏକା ସାଙ୍ଗରେ ଗଛରେ ଚଢ଼ି ପିଜୁଳି ଖାଆନ୍ତି । ଥରେ ଜଣକ ବାଡ଼ିରେ ପଶି ପିଜୁଳି ଖାଉଥିଲେ । ଟସ୍ ଘରବାଲା ଆସି ଦୁହିଁଙ୍କ-ଯାକଙ୍କୁ ଧରି ମାରିବ ବୋଲି ବସିଲା । କାଣିଆ ସବୁ ଦୋଷ କପିଳା ଉପରେ ପକାଇ ଦେଇ ଖସିଗଲା । କପିଳା ନିଜ ସାଙ୍ଗ ନାଆଁରେ କିଛି ନ କହି ସେ ଘରବାଲାକୁ ଖୁବ୍ ଡେଢ଼ି ମେଢ଼ି ଦେଖେଇଲା । ଘରବାଲା ସେ ପିଲାର ଡେଢ଼ି ମେଢ଼ି ଦେଖି ଡରିଗଲା । ମାଡ଼ ନମାରି ଖାଲି ତାଗିଦ୍ କରି ଛାଡ଼ିଦେଲା ।



କାଣିଆ କପିଳା ଦୁହେଁ ଯାକ ତାଙ୍କ ଗାଆଁ ଚାଟଶାଳୀରେ ପଢ଼ିଲେ । କପିଳା ମନଦେଇ ପଢ଼େ । କାଣିଆ ଖାଲି ଭୁଲାଏ । କିନ୍ତୁ କ ... ଅବଧାନଙ୍କୁ ଭାରି ମାନେ; ଦେଖିଲେ ଲମ୍ବତମ୍ବ ହୋଇ ଗୋଡ଼ତଳେ ପଡ଼ୁଥାଏ ।

ଅନ୍ୟ ପିଲାଙ୍କ ନାଆଁରେ ଖଚ କହିବା କାଣିଆର କାମ । କାଣିଆକୁ ସେଇଥିଯୋଗୁଁ ସାଙ୍ଗପିଲା କେହି ଭଲ ପାଆନ୍ତି ନାହିଁ । ଏପରକି କପିଳା ନାଆଁରେ ମଧ୍ୟ ବେଳେ-ବେଳେ ଅବଧାନଙ୍କ ପାଖରେ ଖଚ କହି ମାଡ଼ ଖୁଆଇ ଦିଏ । କପିଳା ସବୁ ସହିଯାଏ । ନିଜ ସାଙ୍ଗ ବୋଲି କିଛି କହେ ନାହିଁ ।

ଚାଟଶାଳୀରେ ପଢ଼ୁ ପଢ଼ୁ କାଣିଆ କପିଳା ଦୁହେଁଯାକ ଏକ ପହିଲିମାନଠୁଁ କୁସ୍ତି କସରତ ଶିଖିଲେ । କାଣିଆଟା ଡରୁଆ । କିଛି ତା'ର ହେଲା ନାହିଁ । କପିଳାର ଖୁବ୍ ସାହସ, ସେ ଖୁବ୍ ଭଲ ପହିଲିମାନ ହେଲା; ତା ପରେ ଘୋଡ଼ା-ଚଢ଼ା ବି ସେ ଶିଖିଲା । ଏହିପରି ହେଉଁ ହେଉଁ କପିଳା ଜଣେ ବଡ଼ ବୀର ବୋଲି ସମସ୍ତେ ଜାଣିଲେ । ସେ କାହାକୁ ଖୋସାମତ କରେନାହିଁ କି କାହାର ପାଖରେ କୌଣସି କଥା ପାଇଁ ନଇଁଲେଇ ବଇଁଲେଇ ହୁଏ ନାହିଁ । କାଣିଆ ଠିକ୍ ତା'ର ବିପରୀତ । ଖୋସାମତ କରିବା, ଖଚ କହିବା, ସବୁଥିରେ ସେ ବଡ଼ ପାରଗ ।

ଯାହାକୁ ତାହାକୁ ଖୋସାମତ କରି କାଣିଆ ରାଜାଘରେ ଏକ ଗୁମାସ୍ତା କାମ ପାଇଲା । କପିଳା କିଛି କାମ ପାଇଲା ନାହିଁ, କାରଣ ସେ ଅଣ୍ଟାଗୁଞ୍ଜା କାହାକୁ ଦେଲାନାହିଁ କି କଥା ପଦେ ସୁଦ୍ଧା କହିଲା ନାହିଁ । କାଣିଆ ଗୁମାସ୍ତା ହୋଇ ମନେକଲା ଯେ ସେ ଭାରି ବଡ଼ କାମ କରିଛି । କପିଳାକୁ ଦେଖିଲେ ହସେ; ଥଟ୍ଟା କରି କହେ—'ପାଠ ପଢ଼, କୁସ୍ତି କର, ଘୋଡ଼ା ଚଢ଼, ଏଣେ ଉପାସ ଗୁଲ । ଦେଖ, ମୁଁ କିଛି ନ କରି କି ସୁଖରେ ଅଛି' ।

କପିଳା ମନକଥା ମନରେ ମାରି ଥାଏ । ଯୋଗକୁ ହେଲା କ'ଣ ନା ରାଜା ମରିଗଲେ । ଆଉ ତାଙ୍କର ପିଲାପିଲି ନାହିଁ । କିଏ ରାଜା ହେବ ବୋଲି ହୁରି ପଡ଼ିଲା । ଯେ ସମସ୍ତଙ୍କ ଠାରୁ ବଡ଼ ବୀର ବୋଲି ପ୍ରମାଣ ଦେଲା, ସେ ହେଲା ରାଜା—ଓଡ଼ିଶାର ସବୁଠାରୁ ବଡ଼ ରାଜା—କପିଳେନ୍ଦ୍ର ଦେବ ।

କପିଳା ରାଜା ହେବା ପରେ କାଣିଆ ଗଲା ଥରେ ଦେଖାକରି, ପିଲା-ଦିନର ସାଙ୍ଗ ବୋଲି ଦୟା ଦେଇ କିଛି ବଡ଼ କାମ ପାଇବ । କିନ୍ତୁ କାଣିଆକୁ ବାହାରେ ଚପରାଶି ଛାଡ଼ିଲେ ନାହିଁ । ସେଇଠୁଁ ଆଜିସୁଦ୍ଧା କଥା ରହିଯାଇଛି— 'କାଣିଆ କପିଳାର ଆଉ ଭେଟ ନାହିଁ' ।

# ବିଷ୍ଣୁପୁରର ଭିତିରି କଥା



ଈଶ୍ୱର କେଉଁଠି ଅଛନ୍ତି କେ ଜାଣେ, କିନ୍ତୁ ସେ ଖୁବ ବୁଢ଼ା । ଏ ଦୁନିଆ ଯେତେବେଳେ ସୃଷ୍ଟି ହେଲା, ସେତେବେଳେ କୁଆଡେ ସେ ଖୁବ ତେଜସ୍ୱାନ ଯୁବକ ଥିଲେ । ଗୋଟାଏ ଖେଳ ଲଗାଇବା ପାଇଁ ସେ ଆଗେ ତିନି ଦେବତା ସୃଷ୍ଟି କଲେ — ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ବ୍ରହ୍ମାଙ୍କୁ କହିଲେ, ଦୁନିଆକୁ ସୃଷ୍ଟି କର, ବିଷ୍ଣୁଙ୍କୁ କହିଲେ ଦୁନିଆ ସୃଷ୍ଟି ହେବାପରେ ସବୁ ଠିକ୍ ଚାଲିଛି କି ନା ଦେଖ, ତା ପରେ ମହେଶ୍ୱରଙ୍କୁ କହିଲେ, ସବୁ ଠିକ୍ ନ ଚାଲିଲେ ତୁମେ ସବୁ ଭାଙ୍ଗି ଚୂରମାର କରିଦିଅ ।

ପିଲା ସବୁ ଯେପରି ଧୂଳିଘର ଖେଳନ୍ତି, ସେହିପରି ବ୍ରହ୍ମା ଦୁନିଆଟାକୁ ସୃଷ୍ଟି କରିଦେଲେ । ତେଣିକି ବିଷ୍ଣୁ ରହିଲେ ତା ର ଜମାରେ, ଯେପରି ସେ ଧୂଳିଘରକୁ କେହି ନ ଭାଙ୍ଗନ୍ତି ।



ଜୀବଜନ୍ତୁ, ଗଛପତ୍ର, ମଣିଷ, ସବୁ ସୃଷ୍ଟି ହୋଇ ଚଳୁଚନ୍ତି ବିଷ୍ଣୁଙ୍କ ଦ୍ୱାରା । ବିଷ୍ଣୁ ଏକାକୀ କାମ ଚଳାଇ ପାରିଲେ ନାହିଁ । ସବୁଠୁଁ ବେଶୀ ଗୋଳମାଳ କଲେ ମଣିଷ । କିଏ କହିଲା, ମୁଁ ଖାଇନାହିଁ, କିଏ କହିଲା ମୋର ଲୁଗାପଟା ନାହିଁ, କିଏ କହିଲା ମୋର ପକ୍‌କା ଘର ଦରକାର, କିଏ କହିଲା ମୋର ଟଙ୍କା ଦରକାର, କିଏ କହିଲା ମୁଁ ପାଠ ପଢ଼ିବି, କିଏ କହିଲା ମୁଁ ହାକିମ ହେବି, କିଏ କହିଲା ମୁଁ ଇଂଲେଣ୍ଡ, ଆମେରିକା, ଋଷିଆ ଯିବି—ଏହିମନ୍ତ ଯାହା ମନକୁ ଯାହା ଆସିଲା ସେ ତାହା ମାଗିଲେ । ମଣିଷ ମନର ତ' କିଛି ସୀମାନାହିଁ । ସ୍ୱର୍ଗରେ ଛାଡ଼ିଦେଲେ ବି ମଣିଷର ଆଶା ମେଣ୍ଟିବ ନାହିଁ । ତେଣୁ ଏସବୁକୁ ଚଳାଇବା ଭାରି କଠିନ ହେଲା ।

ମଣିଷକୁ ଯେତେବେଳେ ବ୍ରହ୍ମା ସୃଷ୍ଟି କଲେ, ସେତେବେଳେ ବିଷ୍ଣୁ ଜାଣି ନ ଥିଲେ ଯେ ଏମାନେ ଏତେ ଆଉକୁ ମନ ଦେବେ । ବିଷ୍ଣୁ ଅସ୍ଥିର ହୋଇଯାଇ ଈଶ୍ୱରଙ୍କୁ କହିଲେ, ଆପଣ ତ' ମୋତେ ଏ ଦୁନିଆକୁ ପାଳନ ପୋଷଣ କରିବା ପାଇଁ ଭାର ଦେଇଛନ୍ତି, ମୁଁ ପ୍ରାଣପଣେ ଲାଗିଛି । କିନ୍ତୁ ମୁଁ ଆଉ ଏ ମଣିଷଙ୍କୁ ପାରିବି ନାହିଁ । ସେମାନେ ତ ମୋତେ ଟପିଯାଇ ଆପଣଙ୍କୁ ଟପିଯିବେ ବୋଲି ବସିଲେଣି । ମୋତେ ଏ କାମରୁ ବିଦାୟ ଦିଅ । ମୁଁ ଆଉ ପାରିବି ନାହିଁ ।

ଈଶ୍ୱର ସବୁକଥା ଶୁଣି ଭାବିଚନ୍ତି କହିଲେ, 'ଦେଖ ବିଷ୍ଣୁ, ତୁମେ ବ୍ୟସ୍ତ ହୁଅ ନାହିଁ । ମଣିଷ ଯାହା ଚାହୁଁଛନ୍ତି, ସେ ସବୁକୁ ଗୋଟିଏ ନିୟମରେ ପକାଇଦିଅ । ଯାହା ଯେ ଚାହୁଁ ପଛକେ, ସବୁଯାକ ହୁଏତ ଧନ ନ ହେଲେ ବିଦ୍ୟା ଭିତରେ ଆସି ପଡ଼ିବ । ଏଣୁ ତୁମେ ଦୁଇଟି ବାହାହୁଅ । ଜଣକୁ ରଖି ଧନ ଜମାରେ ଓ ଆଉ ଜଣକୁ ରଖ ବିଦ୍ୟା ଜମାରେ । ଯେତେବେଳେ ଯେଉଁ ମଣିଷ ଯାହା ମାଗିବେ, ତାକୁ ବିଚାର କରି ଏ ସ୍ତ୍ରୀଙ୍କୁ ନ ହେଲେ ସେ ସ୍ତ୍ରୀଙ୍କୁ ପୂଜା ଦେବାକୁ ତାକୁ କୁହ । ସେଥିରୁ ବର ନେଲେ ସବୁ ହବ । ଏପରି ହେଲେ ତୁମ ଉପରୁ ଦୋଷ କମିଯିବ ।

ବିଷ୍ଣୁ ଏହି ପରାମର୍ଶ ଅନୁସାରେ ଦୁଇଟି ବାହା ହେଲେ । ଜଣଙ୍କ ନାଆଁ ଲକ୍ଷ୍ମୀ ଓ ଆଉ ଜଣଙ୍କ ନାଆଁ ସରସ୍ୱତୀ । ଲକ୍ଷ୍ମୀ ରହିଲେ ଧନ ଜମାରେ, ସରସ୍ୱତୀ ରହିଲେ ବିଦ୍ୟା ଜମାରେ ।

ଘର କଲେ ତ' କଳିକଜିଆ ଅଛି । ଲକ୍ଷ୍ମୀ-ସରସ୍ୱତୀ ଦୁଇ ସଉତୁଣୀଙ୍କ ଭିତରେ ଭାରି କଳିକଜିଆ ହୁଏ । ତାକୁ ବିଷ୍ଣୁ ବୁଝାଶୁଝା କରି ମେଣ୍ଟାନ୍ତି । ଏହିପରି ଚାଲିଛି । କିନ୍ତୁ ମଣିଷ ତ' ଏ ଭିତର କଥା ଜାଣନ୍ତି ନାହିଁ । ସେମାନେ ଭାବନ୍ତି ଯେ ସରସ୍ୱତୀଙ୍କୁ ବର ମାଗିଲେ ଲକ୍ଷ୍ମୀ ରାଗିବେ, ବା ଲକ୍ଷ୍ମୀଙ୍କୁ ବର ମାଗିଲେ ସରସ୍ୱତୀ ରାଗିବେ । ଧନ ଚାହିଁଲେ ବିଦ୍ୟା ହେବନାହିଁ, ବିଦ୍ୟା ଚାହିଁଲେ ଧନ ମିଳିବନାହିଁ । ନିର୍ବୋଧ ଲୋକସବୁ ଏହିପରି ଭୁଲ୍ ବୁଝିଲେ ।

କିନ୍ତୁ ମଣିଷଙ୍କ ବୁଦ୍ଧିକୁ ପାରିବ କିଏ ? ଏପରି ଅନେକ ବାହାରିଲେ ଯେ ସରସ୍ୱତୀଙ୍କ ଠାରୁ ବର ପାଇ ଲକ୍ଷ୍ମୀଙ୍କ ବର ମଧ୍ୟ ଦାବୀ କଲେ । ଜ୍ଞାନ ବଳରେ ଧନ ଅର୍ଜନ କରିବା ପାଇଁ ବାହାରିଲେ । ଏ ବୁଦ୍ଧିରେ ଇଂଲଣ୍ଡ ଆମେରିକା ପ୍ରଭୃତି ବହୁ ଦେଶ ଧନ, ବିଦ୍ୟା ଉଭୟରେ ଆଗେଇ ଗଲେ । ଏକଥା ବିଷ୍ଣୁ ଯେପରି ଜାଣିଛନ୍ତି, ସେ ବି ଭାର୍ଯ୍ୟାଙ୍କୁ ସାବଧାନ କରି କହିଲେ, 'ଦେଖ, ମଣିଷ ବୁଦ୍ଧି ଆଗରେ ତୁମେ ପାରିବ ନାହିଁ । ଏଣିକି ମିଳିମିଶି ଚଲ, ନ ହେଲେ ଏ ମଣିଷ ଆମ ଘରର ଇଜ୍ଜତକୁ ପଦାରେ ପକାଇଦେବେ ।' ଲକ୍ଷ୍ମୀ ସରସ୍ୱତୀ ତା ପରେ ଆଉ କଳିଗୋଳ ନ କରି ସହି ସମ୍ଭାଳି ଚଳିଲେ ।





ଆମ ଦେଶରେ କିନ୍ତୁ ଲୋକସବୁ ଭାବନ୍ତି, ଲକ୍ଷ୍ମୀ, ସରସ୍ୱତୀଙ୍କର ବରାବର କଳି । ସେମାନେ ଭିତର କଥା ଜାଣନ୍ତି ନାହିଁ । ସେଇଥିପାଇଁ ଅନ୍ୟ ଦେଶର ମଣିଷମାନେ ପାଟିକରି କହୁଛନ୍ତି, ଲକ୍ଷ୍ମୀ ସରସ୍ୱତୀଙ୍କ ଭିତରେ କଳି ନାହିଁ । ସରସ୍ୱତୀଙ୍କୁ ବର ମାଗିଲେ ସେହି ବରରେ ଲକ୍ଷ୍ମୀଙ୍କଠାରୁ ବର ମିଳିଯିବ । ତେଣୁ ଆଉ ସରସ୍ୱତୀଙ୍କଠାରୁ ସମସ୍ତେ ଜ୍ଞାନ ବର ମାଗୁଛନ୍ତି । ସରସ୍ୱତୀଙ୍କୁ ଛାଡ଼ି ଲକ୍ଷ୍ମୀଙ୍କ ପାଖକୁ କେହି ଆସୁନାହାନ୍ତି । ଲକ୍ଷ୍ମୀଙ୍କ ମନ ପ୍ରଥମେ ପ୍ରଥମେ ଭାରି ଖରାପ ହେଉଥିଲା । କିନ୍ତୁ ବିଷ୍ଣୁଙ୍କ ପରାମର୍ଶକ୍ରମେ ସେ ସରସ୍ୱତୀଙ୍କ ଅଧୀନସ୍ଥ ହୋଇଗଲେଣି ।

ଏହା ବିଷ୍ଣୁପୁରର/ଏକ ଭିତର ଖବର । ସବୁ ପିଲା ଏ କଥାଟି ଜାଣି ସେହି ଅନୁସାରେ ଚଳ । କେଉଁଠି ଏକଥା କହିବ ନାହିଁଟି ! ଏହା ଭାରି ଭିତର ଖବର ।